# ହିମାଚଳେ
# ଉଦୟ-ଉତ୍ସବ ।

ରାୟ ଶ୍ରୀମଧୁସୂଦନ ରାଓ ବାହାଦୁର

ପ୍ରଣୀତ ।

ଶ୍ରୀଦୀନବନ୍ଧୁ ଗଡ଼ନାୟକ ପ୍ରେସ ସେକ୍ରେଟରୀଙ୍କ ଦ୍ୱାରା

ହିତୈଷିଣୀ ଇଲେକ୍ଟ୍ରିକ୍ ମେସିନ ପ୍ରେସରେ ମୁଦ୍ରିତ ।

ଜଗନ୍ନାଥବଲ୍ଲଭ ମୁଦ୍ରାଳୟ

ବାମଣ୍ଡା ।

୧୯୧୧

# ହିମାଚଳେ ଉଦୟ-ଉତ୍ସବ ।

ସଫଳ ହୋଇଲା ଆଜ ବ୍ୟାକୁଳ ବାସନା
ଯାମିନୀର ଶେଷ ଯାମେ ଜାଗିଲା ଚେତନା ।
ପ୍ରାଚୀ ଚକ୍ରବାଳେ ସୂକ୍ଷ୍ମ ପ୍ରଭାର ପ୍ରକାଶ
ସେ ବ୍ରାହ୍ମ ମୁହୂର୍ତ୍ତେ ବକ୍ଷେ ଥରିଲା ଆକାଶ ।
ସେ ଉଦାର ସୂକ୍ଷ୍ମଜ୍ୟୋତି ସଞ୍ଚରିଲା ରନ୍ଧ୍ରେ
ଊର୍ଦ୍ଧ୍ୱଲୋକେ ନୀଳକାନ୍ତ ଗଗନର ଦାଣ୍ଡେ ।
ମୁକ୍ତାର ପାଣ୍ଡୁର ଛଟା କି ଦିବ୍ୟ ଛଟେକେ
ଭେଦି ଦିଗ୍‌ବଳୟ-ରେଖା ଦ୍ୟୁଲୋକେ ଫୁଟେକେ ।
ଉଠି ଯେହ୍ନେ ହୀରକର ସୋପାନେ ସୋପାନେ
ହସ ହସ ମୁଖେ ଉଷା ଉଇଁଲେ ବିମାନେ ।
ଏ ଅମୃତ ଲଗ୍ନେ ଉଭା ହୋଇ ଗିରି-କକ୍ଷେ
ଉଦୟ-ଉତ୍ସବ ଲୀଳା ଦେଖିଲି ପ୍ରତ୍ୟକ୍ଷେ ।
ଏବେ ଦ୍ୟାବା-ପୃଥିବୀର ପରିଣୟୋତ୍ସବ
ଚିର ପୁରାତନ ପୁଣି ନିତ୍ୟ ନବ ନବ ।
ଜ୍ୟୋତିର ପରମାଶ୍ଚର୍ଯ୍ୟ ଲୀଳାର ବିଳାସେ
ଲାବଣ୍ୟର ଇନ୍ଦ୍ରଜାଲ ପ୍ରକଟେ ଆକାଶେ ।

ରହିଅଛେ କେତେ ପାଦ ଶୈଳ ଟେକି ଶିର
ହି ପୁଣ୍ୟ ପ୍ରତୀକ୍ଷା-ଭରେ ନିସ୍ତବଧ ସ୍ଥିର !
ମହା ମହିମାରେ ସେଥିମଧ୍ୟେ ସର୍ବୋପରି
ଉତ୍ତରେ କାଞ୍ଚନଜଙ୍ଘା ଶୁଭ୍ର ମୂର୍ତ୍ତିଧରି
ହିମଗିରି ପଞ୍ଚଶୃଙ୍ଗେ ଭେଦି ମହାକାଶ
ପାବନ ପଞ୍ଚାଗ୍ନି ବ୍ରତ ଅଙ୍ଗିରା-ସଙ୍କାଶ
ମହା ପ୍ରକୃତିର ମହା ପୁରୋହିତ ବେଶେ
ରହିଛି ଶାଶ୍ୱତ ଶ୍ୱେତ ହିମାନୀ-ପ୍ରଦେଶେ ।
ସହସା ରହସ୍ୟମୟ ମହାନନ୍ଦୋଲ୍ଲାସେ
ସେ ଜ୍ୟୋତି ଉଠିଲା ଜଳି ପ୍ରାଚୀ ଆକାଶେ ,
ପଶ୍ଚିମର ଦୂରତମ ଅତଳ ପାତାଳେ
ଘଉଡ଼ାଇ ଶର୍ବରୀର ଘନ ତମୋଜାଲେ ।
ଗିରିର ସ୍ଫଟିକ-ଗୌର ଯଜ୍ଞ ବେଦୀପରେ
ଜଳି ଉଠିଲା କି ବହ୍ନି ନଭୋ ମଣ୍ଡଳରେ !
ସେ ଜ୍ୟୋତି ପରଶେ ଆହା ସେ ପ୍ରଥମ କ୍ଷଣେ
ଧବଳ ତୁଷାର ମୟ ସେ ଊର୍ଦ୍ଧ୍ୱ ଭୁବନେ
ଅରୁଣ କିରଣ ସ୍ପର୍ଶେ ଶୁକ୍ଳ ଶତଦଳ ,
ଅଥବା ଭକ୍ତିଯୋଗେ ଭକ୍ତ-ପ୍ରାଣ ସୁକୋମଳ ,
ଯେସନ ଉଠଇ ଫୁଟି ମହାପୁଲକରେ
ତେସନ [illegible] ନୀଳକାନ୍ତ ଗଗନ-ସାଗରେ
କି ଦିବ୍ୟ ବିବର୍ତ୍ତେ ଆହା କି ପରମୋଲ୍ଲାସେ ,
ଚିନ୍ମୟ ଶୋଭା[illegible]ଯେନେ ଉନ୍ମୁକ୍ତ-ଉଚ୍ଛ୍ୱାସେ

## ହିମାଚଳେ ଉଦୟ-ଉତ୍ସବ !

ପାଷାଣ ହିମାଦ୍ରି ଗୌର କାନ୍ତିରେ ଭାସ୍ୱର
ବିକଶି ଉଠିଲା ପୁଣ୍ୟତେଜେ ଗୌରବର !
ଶୃଙ୍ଗେ ଶୃଙ୍ଗେ ଅରୁଣିତ ଉଦୟାଦ୍ରି-ତଟେ
ବିରାଜି ରାଜିବ-ରୁଚି ମୟୂଖ ପ୍ରକଟେ !
ନିଃଶେଷରେ ନୈଶତମଃ ବିନାଶି ମନ୍ତ୍ରରେ
ରବି ଝବଣୀକ୍ଷି ପ୍ରାଚୀ - ଅଙ୍ଗା- ଆକାଶରେ
ଅରୁଣ କିରଣରୂପ ଅତୁଲ୍ୟ ତୁଳରେ
ଉନ୍ମୀଳିଲା ମହାଚିତ୍ର ନଗେନ୍ଦ୍ର ମୌଳିରେ !
ଇନ୍ଦ୍ରନୀଳେ ପଦ୍ମରାଗ- ପରାଗ ମିଶାଇ
ଅନ୍ୟାପଦ୍ମେ ଇନ୍ଦୀବର- ରୁଚିକୁ ରସାଇ
କାମ୍ୟ କମଳସ୍ପୃ ରୁଚି ରସାଣି ସିନ୍ଦୂରେ
ରଞ୍ଜିଲା ଗିରୀନ୍ଦ୍ରଶିର ମହାପ୍ରଭା - ପୂରେ !
ସହସା ଉଜ୍ଜ୍ୱଳ ଦିବ୍ୟ ସୁଷମା - ତରଙ୍ଗେ ,
ସେପ୍ରଭା - ପ୍ରବାହ ବେଗେ ବୁଡ଼ାଇଲା ରଙ୍ଗେ
ଉଷାର ମୁକ୍ତାଭ ଜ୍ୟୋତି ବର୍ଣ୍ଣିଲା ରୁଚିରେ
ହିମାଦ୍ରିର ସ୍ଫଟିକାଭ ବିଶାଳ ଶରୀରେ !
ପୁଣି କି ରହସ୍ୟମୟ ବିପୁଳ ପୁଲକେ
ସେ ନଗେନ୍ଦ୍ର କ୍ଷଣେ ଅବଲୋକି ଊର୍ଦ୍ଧ୍ୱଲୋକେ
ଥରି ଉଠିଲା କି ଯେହ୍ନେ ମହା ପ୍ରେମାବେଶେ
ସାଶୀର୍ବାଦ ଭାନୁ-ଦୃଷ୍ଟି ଲଭି ଭାଲ-ଦେଶେ !
ପୁଣି ଶୃଙ୍ଗେ ଶୃଙ୍ଗେ ପରିବର୍ତ୍ତି ଅଭିନବ
ଦେଖି ଦେଖି କି ଅଦ୍ଭୁତ ଜ୍ୟୋତିର ବିଭବ !

ତପତ କାଞ୍ଚନ ଜରେ କାଞ୍ଚନଜଙ୍ଘାର
ଧବଳ ଶିଖର-ଚୟ ଦଶେ ମନୋହାର ।
ଯେତ୍ତ ପାଟଲମା କାହିଁ ଗଲା ସ୍ୱପ୍ନପ୍ରାୟେ
ସୁବର୍ଣ୍ଣ ଲହରୀ ମାତ ଗଲା ଗିରିକାୟେ ।
ଉଚ୍ଛ୍ୱସି ଉଠିଲା ଗିରି – ବକ୍ଷ ଆନନ୍ଦରେ ,
କ୍ରମେ ଓହ୍ଲାଇଲା ଜ୍ୟୋତ ଭୂଧରେ ଭୂଧରେ ।

ପୂରୁବେ ଦକ୍ଷିଣେ ପୁଣି ପଶ୍ଚିମେ ଉତ୍ତରେ
ଶତ ଶତ କ୍ରୋଶବ୍ୟାପୀ ଶତ ମହୀଧରେ ।
କନକ କିରଣାସାରେ ସ୍ନାତ କଳେବର
ପିନ୍ଧିଲେ ଧବଳ ମେଘ- ପଟ୍ଟବସ୍ତ୍ର ଅମ୍ବର,
ଚଉଡ଼ାଇ ରଖିଥିଲେ ଯାହା ଯତନରେ
ପାର୍ବତୀ ପ୍ରକୃତି ଦେବୀ ନିଜ ଗୃହାଗାରେ ।
ଏହିପରି ସୁଶୋଭିତ ହୋଇ ଶୁଭ୍ରାମ୍ବରେ
ନମିଲେ ଭାସ୍କର-ପଦେ ସକଳ ଭୂଧରେ ।

ଦେଖି ଏହି ମହାଭୂତ ଉଦୟ-ଉତ୍ସବ
ଜ୍ୟୋତିର ପରମାଶ୍ଚର୍ଯ୍ୟ ଶୋଭାର ବିଭବ ,
ଏଦେହର ଅଙ୍ଗେ ଅଙ୍ଗେ ପ୍ରତି ଲୋମକୂପେ
ସଞ୍ଚରିଲା ନବପ୍ରାଣ ମହାହର୍ଷ-ରୂପେ
ସେହିପ୍ରାଣ ଅପରୂପ ତାଳମାନ ଲୟେ
ସହସା ଉଠିଲା ନାଚି ମହାଭାବୋଦୟେ ।
ଅହେତୁକ ଅମାୟିକ ମହା ପ୍ରେମଭରେ
ପାର୍ବତୀ ପ୍ରକୃତି ସଙ୍ଗେ ମାହେନ୍ଦ୍ର ଯୋଗରେ

## ହିମାଚଳେ ଉଦୟ-ଉତ୍ସବ ।

ଏ ଜୀବନ ଗଲା ମିଶି ଅପୂର୍ବ ମିଳନେ
ନିବିଡ଼ ପ୍ରେମର ନବ ବିବାହ--ବନ୍ଧନେ ।
ଏ ଅକୂଳ ହୃଦସିନ୍ଧୁ ଅକୂଳ ତରଙ୍ଗେ
ହିରଣ୍ମୟୀ ଶରଣ୍ମୟୀ ପ୍ରକୃତିର ସଙ୍ଗେ
ସଙ୍ଗୀତ ମଙ୍ଗଳଲଗ୍ନେ ସେ ମହା-ସଙ୍ଗମେ
ସେ ପରମ ତୀର୍ଥେ ଯହିଁ ମରମେ ମରମେ
ଜଡ଼ଜୀବ ସମ୍ମିଳିତ ଅଚ୍ଛେଦ୍ୟ ବନ୍ଧନେ
ବିଶ୍ୱନାଡ଼ୀ-ମୂଳାଧାର ଅନାଦ୍ୟ-ଚରଣେ
ମୋ ପ୍ରାଣ ବିଲୀନ ହେଲା ପ୍ରକୃତିର ପ୍ରାଣେ
ପ୍ରକୃତିର ପ୍ରାଣ ଉଚ୍ଛ୍ୱସିତ ମୋ ପରାଣେ
ଦୁହେଁ ମିଶି କି ଅଦ୍ଭୁତ ଦିବ୍ୟ-ପରିଣୟେ
ପରିଣତ ସ୍ୱପ୍ନମୟ କୁମାରୀ-ହୃଦୟେ ।
ଶତ ଶତ ଶରତର ଶୁଭ୍ର ଶତଦଳେ
ଗ୍ରଥିତ ଯେ ବରମାଲ୍ୟ ହୃଦୟ--ଯୁଗଳେ
ସେହି ବରମାଲ୍ୟ ଘେନି ଯୁଗଳ ହୃଦୟ ,
ମୃଣ୍ମୟର ତପୋଧାମେ ନିଃଶେଷେ ଚିନ୍ମୟ ,
ଦ୍ୱୈତ-ଅଦ୍ୱୈତର ଅନୁଭବ ମହୋତ୍ସବେ,
ପବର୍ଦ୍ଧିତ ଜୀବନର ଅପୂର୍ବ ଗୌରବେ
ଉଦାର ଗମ୍ଭୀର ସ୍ତବ୍ଧ ମୁଗ୍ଧ ପ୍ରେମାବେଶେ ,
ଅନାହତ ପରାଣର ପଡ଼ ଘରମେକ୍ଷେ ,
ଅନାଇ ରହିଛି ମହାବ୍ୟୋମେ ଯଥାସତୀ
ସାଗର-ଅମ୍ବରା ମହାଦେବୀ ବସୁମତୀ

କାଞ୍ଚନ-କିରୀଟୀ ରଜ୍ଜ-ବିମ୍ବେ କମ୍ପି ଯଥା
ଅନାଏ ପଦ୍ମିନୀ ପଦ୍ମମୁଖୀ ଟେକି ମଥା ।

ପ୍ରକୃତ-ସଙ୍ଗତେ ମିଳି ଯହୁଁ ଏହି ପ୍ରାଣ
ଅନୁଭବ କି ଅଦ୍ଭୁତ ଅମୃତ ଆହ୍ୱାନ
ଅନାଇଲା ପ୍ରେମନେତ୍ରେ, ସେ ପ୍ରେମ-ନିଧାନ
ସେ ଅନ୍ତରତମ ସଖା ନିଖିଳ-ନିଦାନ
ଅନନ୍ତ ପ୍ରେମର ମୁଗ୍ଧ ସ୍ନିଗ୍ଧ ଆକର୍ଷଣେ
ଅଲକ୍ଷିତେ ପାଶେ ପ୍ରାଣ ଟାଣିନେଲେ କ୍ଷଣେ ।
ପ୍ରେମାଶ୍ରୁ ପୂରିଲା ତନୁ, ପୁଲକେ ପରାଣ ।
ମର୍ମରୁ ଉଠିଲା ମର୍ମ—ଭେଦୀ ସ୍ତବଗାନ
ଉତ୍ସପ୍ରାୟେ ଉତ୍ସାରିତ ବିଦାରି ପାଷାଣ
ନୃତ୍ୟଗୀତେ କଲ୍ଲୋଳିତ ନିତ୍ୟବହମାନ ।
ବୋଇଲି, ହେପ୍ରାଣସ୍ୱାମୀ ଆହେ ଅନୁପମ
ଧନ୍ୟହେଲା ଆଜି ଏ ଅଧମ ପ୍ରାଣମନ ।
ଅନନ୍ତ ଅପାରଭବ ପ୍ରାଣେ ପ୍ରାଣ--ଗଣ
ମିଳନ୍ତି ନିଭୃତେ ଆଜି ଏମୋର ପରାଣ ।
ଅନନ୍ତ ସଙ୍ଗତେ ମୋର ଅନନ୍ତ ମିଳନ
ମର୍ମେ ମର୍ମେ ପୁଲକିତ ମୁଁ ଦେହମନ
କି ଅପୂର୍ବ କି ରହସ୍ୟ ମନ୍ତ୍ର ପରଶରେ
ଭରିଅଛି ସର୍ବପ୍ରାଣ ମହାନନ୍ଦରେ
କିନନ୍ଦନ—ଗନ୍ଧ ପ୍ରାଣ—ନିକୁଞ୍ଜ ନିବାସେ
ଫୁଟୁଅଛି ଫୁଲରାଜି ବସନ୍ତ ଉଲ୍ଲାସେ

ହେ ଅନାଦି ହେ ଅନନ୍ତ ରସ—ପ୍ରସ୍ରବଣ
ମୋର ଆଦି ଅନ୍ତ ରସେ ରସେ ନିମଗନ
ଆଜି ମୋର ନେତ୍ରୋତ୍ସବ, ଶ୍ରୀନେତ୍ରେ ତୁମ୍ଭର
ନିମଗନ ମୁଗ୍ଧଦୃଷ୍ଟି ଏ ମୋ ନୟନର ।
ଦେଖଇ ଏ ପ୍ରଭାତର ଦ୍ୟୁଲୋକେ ଭୂଲୋକେ
ପୂର୍ଣ୍ଣ ଏ ନିଖିଳ ତବ ଆଲୋକେ ଆଲୋକେ ।
ଦଶଦିଗେ ବିରାଜିତ ମହାସ୍ୱର୍ଗପୁରୀ
ଦଶଦିଗେ ପ୍ରକାଶିତ ଦିବ୍ୟ—ମାଧୁରୀ ।
ସଙ୍ଗୀତ—ବିଭବେ ପୁଣି ସଙ୍ଗୀତ ଗୌରବେ
ଧନ୍ୟ ମୋ ଜୀବନ ତବ ଜୟ—ଅନୁଭବେ ।
ଏ ନିଖିଳ ବିଶ୍ୱ ଆଜି ନିଜସ୍ୱ ମୋହର
ଏ ଦିଗନ୍ତ ଏ ସୁକାନ୍ତ ଧରଣୀ-ଅମ୍ବର ।
ଆଜି ମୋ ଶ୍ରବଣୋତ୍ସବ ଏ ପ୍ରାଣ-କନ୍ଦରେ
ଝଙ୍କୃତ ରାଗିଣୀରେ ଝମହାଛନ୍ଦରେ ।
ଏ ପ୍ରାଣ-ବୀଣାରେ ତବ ଶ୍ରୀକର-ପରଶେ
ଗାୟତ୍ରୀ ଓଁକାରମୟୀ ଧ୍ୱନିତ ରଭସେ ।
ବଂଶୀଧ୍ୱନି "ଶୁଣୁଛି ମୁଁ ପ୍ରାଣର ଶ୍ରୀହରି,
"ମୋହର ମୋହର ତୁମ୍ଭେ ମୋହର ମୋହର"
ଅଣୁରେ ଅଣୁରେ, ନାଥ, ଏ ମହାବିଶ୍ୱର
ବାଜୁଅଛି ଅନାହତ ବୀଣା ବଂଶୀ ସ୍ୱର ।
ପ୍ରାଣେ ପ୍ରତିଧ୍ୱନି ତାର ଉଠୁଛି ସୁସ୍ୱର
"ମୋ ହର ମୋ ହର ତୁମ୍ଭେ ମୋ ହର ମୋ ହର" ।

କି ଆଉ କହିବି ବିଶ୍ୱଦେବ ପ୍ରାଣଧବ
କିଛିଲାଗି ଥାଉ ଏହି ମହାମହୋତ୍ସବ ।
ମୋର ଆଶା-ଆକାଙ୍କ୍ଷାର ଅତଳ ବିତଳ
ତବ ହସ୍ତ-ପରେ ପୂର୍ଣ୍ଣ, ସାର୍ଥକ, ସଫଳ ।
ହେଉ ସଦା ସର୍ବାଙ୍ଗର ପରମ ବିଶ୍ୱାସେ
ଦିବ୍ୟଜ୍ଞାନ-ଶୁଦ୍ଧ ପ୍ରୀତି- ପୁଣ୍ୟର ବିଳାସେ ।
କାଳର ଆରମ୍ଭ ଆଗୁ ହେ ପରମ ବର
ବରି ଅଛୁ ଅକିଞ୍ଚନ ଏ ପ୍ରାଣ ମୋହର ।
ପରମ ବରେଣ୍ୟ ଏବେ ଏ କ୍ଷୁଦ୍ର ଜୀବନ
ପରମ ଶ୍ରୀପଦ ତବ ବରୁ ଏକ୍ଷଣ ।

Printed by D. Garnayak,
The Jagannath Ballav Press, Banra
1911